# ଆମ ଘର ଏଇ ପୃଥିବୀ

ପୃଥିବୀ, ବିଜ୍ଞାନ ଓ ମଣିଷ ବିଷୟରେ କିଛି ସାମାଜିକ ଚିନ୍ତା

ସୃଜନୀକା SRUJANIKA

Qr. No. CR-1,

Reg. Medical Research Ctr. Campus

CHANDRASEKHARPUR

BHUBANESWAR-751016

Tel. 57791

# ସୃଜନୀକାର ନିମନ୍ତ୍ରଣ ......

ପୃଥିବୀ ଉପରେ ଛିଡ଼ାହୋଇ ରାତିରେ ମୁଣ୍ଡ ଉପରକୁ ଅନାଇଲେ ଅସଂଖ୍ୟ ଝିଲିମିଲି ତାରା ଆମେ ଦେଖି ଖୁବ୍ ଆଶ୍ଚର୍ଯ୍ୟ ହେଉ । ସହଜରେ ବିଶ୍ୱାସ କରିହୁଏ ନାହିଁ ଯେ ମହାକାଶର ଅନ୍ୟ କେଉଁଠୁ ଦେଖିଲେ ଆମ ପୃଥିବୀ ମଧ୍ୟ ସେଇ ଟିକି ତାରା-ମାନଙ୍କ ଭିତରୁ ଗୋଟିଏ ଭଳି ଦେଖାଯିବ ।

ଆଗକାଳର ମଣିଷ କେବଳ ନିଜଆଖି ଉପରେ ଭରସାକରି ଧରି ନେଇଥିଲା ଯେ ପୃଥିବୀ ସ୍ଥିର ଓ ଏହି ବିଶ୍ୱର କେନ୍ଦ୍ର ବିନ୍ଦୁ । ତାର ଚାରିପଟେ ସବୁ ତାରା, ଗ୍ରହ ଇତ୍ୟାଦି ବୁଲୁଛନ୍ତି । ଇଏ ତ ଆମ ଆଖିଦେଖା କଥା । କିନ୍ତୁ ଆଧୁନିକ ମଣିଷ ଲକ୍ଷ୍ୟକଲା ଯେ ପୃଥିବୀ ସ୍ଥିର ଥିଲେ ଋତୁ ପରିବର୍ତ୍ତନ, ଆକାଶରେ ଗ୍ରହମାନଙ୍କର ଗତିବିଧି ଓ ଆଉ କେତେଗୁଡ଼ିଏ କଥାର କାରଣ ଠିକ୍‌ଭାବରେ ବୁଝାଯାଇ ପାରୁନାହିଁ । ତେଣୁ ସିଏ ଅନ୍ୟ ଜୀବଙ୍କ ଠାରୁ ତାର ଯେଉଁ ଅଧିକା ଶକ୍ତି ଅଛି ତାକୁ କାମରେ ଲଗାଇଲା—ତାର ମୁଣ୍ଡ ଖେଳାଇଲା । ଅନେକ ବୈଜ୍ଞାନିକଙ୍କର ଚିନ୍ତା, ତର୍କ, ପରୀକ୍ଷା ଓ ଆଲୋଚନାରୁ ଆମେ ପୃଥିବୀ ବିଷୟରେ ଠିକ୍‌କଥା ସବୁ ଜାଣିପାରିଛେ ।

ହଁ, ପୃଥିବୀ ମଧ୍ୟ ସୂର୍ଯ୍ୟ ଚାରିପଟେ ବୁଲୁଥିବା ଗୋଟିଏ ଗ୍ରହ । ସୌର ଜଗତର ତୃତୀୟ ଗ୍ରହ । ଏହାର କିନ୍ତୁ ଅନେକ ବିଶେଷତ୍ୱ ରହିଛି ଯାହା ଫଳରେ ସୌର ଜଗତ ଭିତରେ କେବଳ ଏଠି ଜୀବନ ସମ୍ଭବ ହୋଇଛି । ସେଥିରୁ ଗୋଟିଏ ହେଉଛି ଆମ ଗ୍ରହଟିରେ ବସ୍ତୁର ସବୁ ଅବସ୍ଥା ରହିଛି—କଠିନ ପଥର, ତରଳ ପାଣି ଓ ବାଷ୍ପୀୟ ବାୟୁମଣ୍ଡଳ । ବାୟୁମଣ୍ଡଳଟି ବେଶ୍ ଘନ ଓ ଅମ୍ଳଜାନ ଯୁକ୍ତ । ଏଠାରେ ମିଳୁ-ଥିବା ମୌଳିକ ବସ୍ତୁମାନଙ୍କର ପ୍ରକାର ଅନେକ ବେଶୀ । ଛୋଟିଆ ଉଦ୍‌ଜାନଠାରୁ ଆରମ୍ଭକରି ୟୁରାନିଅମ୍ ଭଳି ଅତି ଓଜନିଆ ପରମାଣୁ ସବୁକୁ ନେଇ ଏ ପୃଥିବୀର ଲକ୍ଷ ଲକ୍ଷ ଯୌଗୀକ ପଦାର୍ଥ ଗଢ଼ା । ପୃଥିବୀର ଉତ୍ତାପ ମଧ୍ୟ ଜୀବନ ପାଇଁ ଠିକ୍—ଅତି ବେଶୀ ନୁହେ କିମ୍ବା କମ୍ ନୁହେଁ ।

ବିଶ୍ୱର ଅନ୍ୟ ଅନେକ ସ୍ଥାନରେ ଜୀବନ ଥାଇପାରେ କିନ୍ତୁ ତାର ରୂପ ଓ ଅବସ୍ଥା ବିଷୟରେ ଆମେ ଚିନ୍ତାମଧ୍ୟ କରି ପାରିବାନି । କିନ୍ତୁ ପୃଥିବୀର ଜୀବ ମଣ୍ଡଳ ନିଶ୍ଚୟ ଅତି ଚମତ୍କାର । ତାର ମୁଖିଆ ହେଉଛେ ପୁଣି ଆମେ—ମଣିଷ । ପୃଥିବୀର ନିର୍ଜୀବ ଦେହ ବିଷୟରେ ଆମେ ଅନେକ କିଛି ଜାଣିଛେ କିନ୍ତୁ ଆମର ଘର ହିସାବରେ ତାକୁ କେବେ ଦେଖିଛେ କି ?

ଆସ ଭାବି ଦେଖିବା **"ଆମ ଘର ଏଇ ପୃଥିବୀ"** କୁ............

# ଆମ ଘର ଏଇ ପୃଥିବୀ-୧

ଆମେ ଗ୍ରରିପଟେ ଦେଖୁଥିବା ଜିନିଷଗୁଡ଼ିକ ଆମର ଖୁବ୍ ଜଣାଶୁଣା । ସବୁ-ଦିନେ ଦେଖୁଥିବାରୁ ଆମେ ସେଗୁଡ଼ିକ ପ୍ରତି ବିଶେଷ ନଜର ଦେଉନାହୁଁ ।

କିନ୍ତୁ ଭବିଲ ଆମ ଗ୍ରରିପଟର ସବୁତକ ଜିନିଷ ଆମେ କ'ଣ ସତରେ ଦେଖିଛେ ? ଏଇଠି ବସି ଗତକାଲି ଦେଖିଥିବା ସବୁତକ ଜିନିଷର ତାଲିକାଟିଏ କରି-ବାକୁ ଚେଷ୍ଟାକର ତ । ଆରମ୍ଭଟା ତ ସହଜ, ଘର, ଖଟ, ଦୁଆର, ଗାଈ, ମଶା, କବାଟ, ବେଙ୍ଗ, କୁନିଝିଅ, ପେଟେଗ, 'ହାଣ୍ଡି, ଝିଟିପିଟି, ତୁଳସୀଗଛ, ପୋଇଡଙ୍କ.........ଆରେ ଏ ତ କ'ଣ କିଛି ସରୁନି । ଛାଡ, ସବୁଠୁ ବଡ଼ ତାଲିକା ପାଇଁ ତ ପୁରସ୍କାର ବି କିଛି ନାହିଁ । ତେବେ ଲକ୍ଷ୍ୟକର ତ, ଆମ ତାଲିକାରେ କିଛି ଜିନିଷର ଜୀବନ ଅଛି ତ ଆଉ କେତେକଙ୍କର ଜୀବନ ନାହିଁ । ଗାଈ, ମଶା, ବେଙ୍ଗ, ତୁଳସୀଗଛ, ପୋଇଡଙ୍କ ଇତ୍ୟାଦି ବଢି ପାରନ୍ତି ଓ ନିଜ ଭଳି ଅନ୍ୟ କେତୋଟି ତିଆରି କରିପାରନ୍ତି । ଆମେ କହୁ ସେମାନଙ୍କର ଜୀବନ ଅଛି । ଘର, ଖଟ, କବାଟ ଏସବୁ ଜଡ଼ ବା ନିର୍ଜୀବ । ଖାଲି ସେତିକି ନୁହେଁ, ଗାଈ, ମଶା, ବେଙ୍ଗ ପ୍ରତ୍ୟେକ ପ୍ରକାରର ଜୀବନ୍ତ ବସ୍ତୁ ଗୋଟିଏ ଗୋଟିଏ ଅଲଗା ଜାତିର । ସେମିତି ଏକା ପ୍ରକାରର ଗୁଣ ଧର୍ମ ଥିବା ନିର୍ଜୀବ ଜିନିଷ-ଗୁଡ଼ିକୁ ନେଇ ଗୋଟିଏ ଗୋଟିଏ ଦଳ ବା ଶ୍ରେଣୀ କରି ପାରିବା । ଏମିତି ସଜାଡ଼ିକରି ବା ଶ୍ରେଣୀ ବିଭଗ କରି ରଖିଦେଲେ ଜିନିଷଗୁଡ଼ିକ ବିଷୟରେ ସହଜରେ ଆମେ ବୁଝି ପାରିବା । ଏହା ହେଉଛି ବିଜ୍ଞାନର ପଦ୍ଧତି ବା ବିଜ୍ଞାନ ସାହାଯ୍ୟରେ ସବୁକଥା ବୁଝି ପାରିବା ପାଇଁ ଏ ପ୍ରକାରର ଶ୍ରେଣୀ ବିଭଗ ଗୋଟିଏ ବାଟ ।

ଆମେ ଶୁଣୁଛେ ଯେ ଆମେ ବର୍ତ୍ତମାନ ବିଜ୍ଞାନର ଯୁଗରେ ରହିଛେ । ବିଜ୍ଞାନ ଓ ତା'ର ବ୍ୟବହାର (କାରିଗରୀ ବିଦ୍ୟା) ଫଳରେ ଆମେ ଆଜି ଅନେକ ନୂଆ ଜିନିଷ ପାଇ ପାରିଛେ । ଅବଶ୍ୟ ସେସବୁରୁ କିଛିଟା ଭଲ ଓ ଆଉ କିଛି ନିଶ୍ଚୟ ଖରପ । କିନ୍ତୁ ଏସବୁ ଜିନିଷକୁ ଲକ୍ଷ୍ୟକଲେ ଦେଖିବା ଏଗୁଡ଼ିକୁ କିଏ ନା କିଏ ତିଆରି କରିଛି । କହିବାକୁଗଲେ ଏହା ମଣିଷ-ପଣିଆର ଗୋଟିଏ ଗୁଣ । କାରଣ କେବଳ ମଣିଷ ଅନେକ କିଛି ତିଆରି କରି ପାରେ କିନ୍ତୁ ଜୀବ-ଜନ୍ତୁ ତା ପାରନ୍ତି ନାହିଁ । ଯେଉଁ ଜିନିଷକୁ ଜଣେ ତିଆରି କରେ ତାକୁ ଆଉ ଜଣକୁ କିଣିବାକୁ ପଡ଼େ । ଦୋକାନରେ ମିଳୁଥିବା ହଜାର ହଜାର ପ୍ରକା-ରର ଜିନିଷ ସବୁକୁ ଭିନ୍ନ ଭିନ୍ନ ଯାଗାରେ ଅନେକ ଲେକ ଲଗିକରି ତିଆରି କରିଛନ୍ତି । ସେଥିରେ ଅନେକ କାରିଗରୀ କୌଶଳ ମଧ୍ୟ ଲଗିଛି । ଏସବୁ କାରିଗରୀ ବିଦ୍ୟା ବାହାରିଛି ବିଜ୍ଞାନରୁ । ଆରମ୍ଭରୁ ଯୁଗ ଯୁଗ ଧରି ମଣିଷ ଜାତି ଯାହା ସବୁ ଶିଖିପାରିଛି ସେ ସବୁ ମିଶିମିଶି ହୋଇଛି ଆଜିର ବିଜ୍ଞାନ । ଏସବୁ ଜ୍ଞାନକୁ ସାଇତି ରଖିବା ପାଇଁ

ଆମର ପ୍ରଧାନ ଉପାୟ ହେଉଛି ବହି । ତେଣୁ ଏହାକୁ ବୁଝିବାକୁ ହେଲେ ଆମକୁ ଲେଖାପଢ଼ା ଶିଖିବାକୁ ହିଁ ହେବ ।

ଆମ ଘରିପଟର ଜିନିଷ ଓ ଘଟଣାସବୁକୁ ବିଜ୍ଞାନ ସାହାଯ୍ୟରେ ବୁଝିବା ଅନ୍ୟ କାରଣରୁ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । କାହିଁକି ନା ଯେ କୌଣସି ଗୋଟିଏ ଘଟଣା ଅନ୍ୟ ବହୁତ ଘଟଣା ଓ ଜିନିଷ ସାଙ୍ଗରେ ଛନ୍ଦିହୋଇ ରହିଛି । ସବୁଦିନ ଆମ କାମରେ ଲାଗୁଥିବା ଛୋଟ ଜିନିଷଟିର ଉଦାହରଣ ନେଇ ଦେଖିବା । ଧର ଗୋଟିଏ ଦିଆସିଲି ବାକ୍ସ । ଆମେ ସିନା ଘରପାଖ ଦୋକାନରୁ ଗୋଟିଏ କିଣି ଆଣିଲେ କିନ୍ତୁ ତାହା ପ୍ରଥମେ ଆସିଲା କେଉଁଠୁ ? ହୁଏତ ବଡ଼ ସହରରେ ଥିବା କେଉଁ ମାଲଗୋଦା-ମରୁ । ସେଠିକୁ ଆସିଲା ଅନେକ ଦୂରରେ ଥିବା ବିରାଟ କାରଖାନାରୁ–ଯେଉଁଠି ହୁଏତ ହଜାର ହଜାର ଲୋକ ଖଟନ୍ତି । ସେଥିରେ ଲାଗିଥିବା କାଠ ଆସିଥିବ ଆହୁରି ଦୂରରେ ଥିବା କେଉଁ ଜଙ୍ଗଲରୁ । ଆଉ ତା'ର କାଗଜ, ବାରୁଦ ସବୁ ଆସିଥିବ ଅନ୍ୟ କେଉଁଠୁ । ଏସବୁକୁ ଏକାଠି କରୁଥିବା ଯନ୍ତ୍ରପାତି ତିଆରି ହୋଇଥିବ ଆଉ କାହାଦ୍ୱାରା ଅନ୍ୟ କେଉଁଠି । ଖାଲି ସେତିକି ନୁହେଁ, ଦିଆସିଲିଟିଏ ତିଆରି ହୋଇଗଲା ପରେ ତାକୁ ବିଭିନ୍ନ ଗଳି କନ୍ଦିରେ ପହଞ୍ଚାଉଥିବା ରେଳଗାଡ଼ି, ଟ୍ରକ ଇତ୍ୟାଦିର ଇତିହାସ ମଧ୍ୟ ସେତିକି ଲମ୍ବା । ଯଦି ଛୋଟିଆ ଦିଆସିଲି ପଛରେ ରହିଛି ଏତେ କଥା ତେବେ ଆମର ଦିନକ-ଯାକର ତାଲିକା ପଛରେ କ'ଣ ବା ନ ଥିବ ?

ଏପରି ଯୋଗସୂତ୍ର ସବୁ ଖୋଜିବାଟା ମଣିଷ ପାଇଁ କିଛି ନୂଆ କଥା ନୁହେଁ । ତା'ର ଆରମ୍ଭ ସମୟରୁ ଲକ୍ଷ ଲକ୍ଷ ବର୍ଷ ଧରି ମଣିଷ ଜଙ୍ଗଲରେ ଶିକାର କରି ଓ ଫଳ-ମୂଳ ଖାଇ ଚଳୁଥିଲା । ମାତ୍ର ୧୦,୦୦୦ ବର୍ଷ ତଳେ ତା'ର ଜୀବନ କିଛି ବଦଳିବା ଆରମ୍ଭ କଲା । କିନ୍ତୁ ସେ ସମୟରେ ମଧ୍ୟ ମଣିଷ ନିଜର କୌତୂହଳୀ ଯୋଗୁଁ ବିଭିନ୍ନ ଘଟଣାର କାରଣ ଖୋଜୁଥିଲା ଏବଂ ମନରେ ଅନେକ ଯୋଗସୂତ୍ର ବାହାର କରୁଥିଲା । କ'ଣ କଲେ ତା'ର ଶିକାର ମିଳିବ, କେଉଁ ସମୟ କେଉଁ କାମ ପାଇଁ ଭଲ, ଖରା ପଡ଼ିଲେ ଗରମ ହେବ, ଫଳ ପାଚିଲେ ଗଛରୁ ପଡ଼ିବ ଇତ୍ୟାଦି । ସବୁ ପ୍ରକାରର ସମ୍ପର୍କ ଯେ ଠିକ୍ ଥିଲା ତା ନୁହେଁ । ଅନେକ ଭୁଲ୍ ଧାରଣା ମଣିଷ ମନରେ ଏ ପର୍ଯ୍ୟନ୍ତ ମଧ୍ୟ ରହି ଯାଇଛି ଯାହାକୁ ଆମେ "ଅନ୍ଧବିଶ୍ୱାସ" କହୁଁ ।

କୌତୂହଳୀ ମଣିଷ ପ୍ରଥମରୁ ଗୋଟିଏ କଥା ଲକ୍ଷ୍ୟ କରିବାକୁ ବାଧ୍ୟହୋଇ ଥିଲା । ତା'ହେଉଛି ତା ମୁଣ୍ଡ ଉପରେ ଥିବା ବିରାଟ ଆକାଶର କଥା । କେତେବେଳେ କ'ଣ ଗୋଟିଏ ଉଜ୍ଜ୍ୱଳ ଜିନିଷ ଆକାଶରେ ବୁଲି ବୁଲି ଘରିଆଡ଼ ଆଲୁଅ ଓ ଗରମ କରି ଦେଉଛି । କିନ୍ତୁ ସିଏ ଉଭେଇଗଲା ପରେ ଅନେକ କ'ଣ ଝିଲିମିଲି ହୋଇ ଭସି ବୁଲୁ-ଛନ୍ତି । ସବୁଦିନ ଦେଖି ଦେଖି କିଛିଟା ଚିହ୍ନା ପରିଚୟ ହୋଇଗଲା-ପରେ ମଣିଷ ସେମା-ନଙ୍କୁ ସବୁ ନାଁ ଦେବାକୁ ଆରମ୍ଭ କଲା । କିଏ ତାରା ବା ନକ୍ଷତ୍ର ତ କିଏ ସୂର୍ଯ୍ୟ, ଚନ୍ଦ୍ର, ଧ୍ରୁବ, ରୋହିଣୀ ଇତ୍ୟାଦି । ପୁଣି ସିଏ ଦେଖିଲା ସେମାନଙ୍କର ନିୟମିତତା । ବର୍ଷର ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ 'ଶ୍ୱାନ' ତାରା ଦେଖାଗଲାବେଳକୁ ମିଶରର ନୀଳନଦୀରେ

ବନ୍ୟା ଆସିବା କଥା ସେ ଦେଶର ଋଷୀମାନେ ଅନେକ ଦିନରୁ ଲକ୍ଷ୍ୟକରି ପାରିଥିଲେ । ଅଧିକାଂଶ ତାରା ଆକାଶରେ ଅନ୍ୟ ତାରାମାନଙ୍କ ତୁଳନାରେ ସ୍ଥିର ରହୁଥିବା ବେଳେ କେତେଗୁଡ଼ିଏ ବର୍ଷର ବିଭିନ୍ନ ସମୟରେ ଅଲଗା ଅଲଗା ଯାଗାରେ ଆସୁଥିଲେ । ଏମାନଙ୍କୁ ମଣିଷ ଡାକିଲା ଗ୍ରହ । ଆଜି ଆମେ ଜାଣିଛେ ଯେ ନଅଟି ଗ୍ରହ ଗୋଟିଏ ପରିବାର ଭଳି 'ସୂର୍ଯ୍ୟ' ବୋଲି ଗୋଟିଏ ତାରାର ଚାରିପଟେ ବୁଲୁଛନ୍ତି । ଏହା ହେଉଛି ଆମର ସୌର ଜଗତ । ତା ଭିତରେ ଅଛି ଆମ ବାସସ୍ଥଳୀ ଏହି 'ପୃଥିବୀ' ଗ୍ରହ ଓ ଚନ୍ଦ୍ର ବା ଜହ୍ନ ହେଉଛି ଆମ ଗ୍ରହର ଗୋଟିଏ ଗ୍ରହ ବା ଉପଗ୍ରହ । ଏମାନଙ୍କ ଭିତରୁ କିଏ ଛୋଟ ତ କିଏ ବଡ଼; କିଏ ପାଖରେ ତ କିଏ ଦୂରରେ । ସୌରଜଗତର ସବୁଠାରୁ ବଡ଼ ଗ୍ରହ ବୃହସ୍ପତି ପୃଥିବୀ ଠାରୁ ପ୍ରାୟ ୧୦୦୦ ଗୁଣ ବଡ଼ ଆଉ ସୂର୍ଯ୍ୟ ତା'ଠାରୁ ୧୦୦୦ ଗୁଣ ବଡ଼ । ତେଣୁ ସୂର୍ଯ୍ୟ ପେଟରେ ଦଶ ଲକ୍ଷଟା ପୃଥିବୀ ରହିଯିବ ।

କିନ୍ତୁ ଆମକୁ ସେମାନେ ଏତେ ଛୋଟ ଦିଶନ୍ତି ଦୂରରେ ଥିବାରୁ । କେତେ ଦୂରରେ ? ଆସ ଚାଲିକରି ଦେଖିବା । ୧୦—୧୨ କିଲୋମିଟର ଦୂରରେ ଥିବା ଆମ ପାଖ ଗାଁ'କୁ ଚାଲି ଚାଲି ଗଲେ ଆମକୁ ୨—୩ ଘଣ୍ଟା ଲାଗିବ । କିନ୍ତୁ ଆମେ ଯଦି ଆମ ଦେଶର ଏ ମୁଣ୍ଡରୁ ସେ ମୁଣ୍ଡକୁ ଯିବା ? ଦିନକୁ ୩୦ କି.ମି. ହିସାବରେ ଚାଲିଲେ ପ୍ରାୟ ୪୦୦୦ କି. ମି. ଲମ୍ବା ଏହି ରାସ୍ତା ସାରିବାକୁ ଆମକୁ ଲାଗିବ ପ୍ରାୟ ୧୫୦ ଦିନ । ଆଉ ଆମ ଗ୍ରହ ପୃଥିବୀ ଚାରିପଟେ ବୁଲିବାକୁ ୪୦,୦୦୦ କି.ମି.କୁ ଲାଗିବ ପ୍ରାୟ ୪ବର୍ଷ । ଅବଶ୍ୟ ଆଜିର ଗାଡ଼ି ମଟର ଥିବା ବେଳେ ଆମକୁ ଏତେ ସମୟ ଚାଲିବାକୁ ପଡ଼ିବ ନାହିଁ ।

ଘଣ୍ଟାକୁ ୨୦୦୦ କି. ମି. ପର୍ଯ୍ୟନ୍ତ ବେଗରେ ଉଡ଼ିପାରୁଥିବା ଉଡ଼ାଜାହାଜମାନଙ୍କୁ ପୃଥିବୀ ଚାରିପଟେ ବୁଲିବାକୁ ଦିନଟାଏ ମଧ୍ୟ ଲାଗିବ ନାହିଁ । ଆଜି ମଣିଷ ରକେଟ୍‌ରେ ଘଣ୍ଟାକୁ ୨୦,୦୦୦ କି. ମି. ବେଗରେ ଯାଇ ୨.୫ ଲକ୍ଷ କି.ମି. ଦୂରରେ ଥିବା ଚନ୍ଦ୍ରରେ ଓହ୍ଲାଇ ସାରିଲାଣି ଓ ଅନ୍ୟ ଗ୍ରହମାନଙ୍କର ଖବର ନେଲାଣି । କିନ୍ତୁ ୧୫ କୋଟି କି. ମି. ଦୂରରେ ଥିବା ସୂର୍ଯ୍ୟକୁ ଯିବାକୁ ହେଲେ ଏ ରକେଟରେ ମଧ୍ୟ ଆମକୁ ବର୍ଷେ ଲାଗିଯିବ । ଅବଶ୍ୟ ସୂର୍ଯ୍ୟଠାରୁ ଆମର ଏହି ଦୂରତାଟା ଆମ ପାଇଁ ଏକଦମ ଠିକ୍ । କାରଣ ଆଉ ପାଖରେ ଥିଲେ ଏତେ ଗରମ ହୁଅନ୍ତା ଯେ ବୁଧ ଓ ଶୁକ୍ର ଭଳି ଏଠି କେହି ବଞ୍ଚି ପାରି ନ ଥାନ୍ତେ । ଅଧିକା ଦୂରରେ ଥିଲେ ଅତି ଥଣ୍ଡାର ଫଳ ମଧ୍ୟ ସେଇଆ ହୋଇଥାନ୍ତା ।

କିନ୍ତୁ ଖୁସିର କଥା ଯେ ଆଲୁଅର ଗତି ବେଗ ରକେଟ ଠାରୁ ମଧ୍ୟ ଅନେକ ବେଶୀ—ସେକେଣ୍ଡକୁ ତିନି ଲକ୍ଷ କି. ମି. । ଗୋଟିଏ ସେକେଣ୍ଡରେ ପୃଥିବୀ ଚାରିପଟେ ଗୋଟିଏ ଆଲୋକ ରଶ୍ମୀ ସାତଥର ବୁଲି ଆସି ପାରିବ । ସୂର୍ଯ୍ୟଠାରୁ ପୃଥିବୀକୁ ଆସିବା ପାଇଁ ତାକୁ ଲାଗିବ ୮ ମିନିଟ୍ । କିନ୍ତୁ ଏବେ ଆମେ ଜାଣିଛେ ଯେ ସୂର୍ଯ୍ୟ ଆକାଶରେ ଦେଖା ଯାଉଥିବା ଅସଂଖ୍ୟ ତାରାମାନଙ୍କ ଭଳି ଗୋଟିଏ ତାରା । ଖାଲି ପାଖରେ ଅଛି ବୋଲି ଏତେ ବଡ଼ ଦେଖାଯାଉଛି । ପ୍ରକୃତରେ ଆମ ସୂର୍ଯ୍ୟ ଗୋଟିଏ ଛୋଟିଆ ତାରା । ଏହାଠାରୁ ହଜାର ହଜାର ଗୁଣ ବଡ଼ ତାରା ଅନେକ ଅଛନ୍ତି ଆଉ ଅନେକ ଦୂରରେ

ମଧ୍ୟ । ସୌରଜଗତର ବାହାରେ ଆମର ସବୁଠୁ ପାଖରେ ଥିବା ତାରା–ଆଲ୍‌ଫା ସେଣ୍ଟାଉରୀ ଆମଠୁ ୪୦ ଲକ୍ଷ କୋଟି କି. ମି. ଦୂରରେ ଅଛି । କେତେ ଦୂର ଭାବି ପାରୁଛ କି ? ଏତେ ଦୂର ଯେ ସେଠାରୁ ଆସିବା ପାଇଁ ଆଲୁଅକୁ ଲାଗିଯାଏ ପ୍ରାୟ ୪ ବର୍ଷ । ଆଜି ଆମେ ତାକୁ ଯେଉଁ ଆଲୋକ ରଶ୍ମି ସାହାଯ୍ୟରେ ଦେଖୁଛେ, ତାହା ସେଠାରୁ ବାହାରିଲାଣି ଚାରି ବର୍ଷ ଆଗରୁ । ଆହୁରି ମଧ୍ୟ ତାରା ଅଛନ୍ତି ଯେଉଁମାନଙ୍କୁ ଆମେ ଆଜି ଦେଖୁଛେ ତାଙ୍କଠୁ ୧୦୦୦ ବର୍ଷ ତଳେ ବାହାରିଥିବା ଆଲୁଅକୁ ନେଇ ।

ମଣିଷ ଛୋଟ ବଡ଼ ତାରାଗୁଡ଼ିକୁ ବିଭିନ୍ନ ନାଁ ଦେଲା ଓ ପାଖାପାଖିଥିବା କେତେଗୁଡ଼ିଏ ତାରାଙ୍କୁ ନେଇ କିଛି ଆକୃତି କଳ୍ପନା କଲା । ଉତ୍ତର ଆକାଶର ସାତଟି ଉଜ୍ଜ୍ୱଳ ତାରାଙ୍କୁ ଆମ ଦେଶରେ ନାଁ ଦେଇଛେ ସପ୍ତର୍ଷି ମଣ୍ଡଳ । କିନ୍ତୁ ଅନ୍ୟ ଦେଶରେ ସେହି ସାତଟି ତାରାକୁ ନେଇ ଗୋଟିଏ ଭାଲୁ ବା ଡଙ୍କିର କଳ୍ପନା କରାଯାଇଛି । ଆମ ମୁଣ୍ଡ ଉପରେ ଥିବା ତାରାଗୁଡ଼ିକୁ ୧୨ଟି ଦଳରେ ଭାଗ କରି ଆଗକାଳର ଜ୍ୟୋତିର୍ବିଜ୍ଞାନୀମାନେ ରାଶିଚକ୍ରର ବର୍ଣ୍ଣନା ଦେଇଥିଲେ । ଏହି ତାରାଗୁଡ଼ିକୁ ନେଇ ମେଣ୍ଢା (ମେଷ), ଷଣ୍ଢ (ବୃଷ) ଇତ୍ୟାଦି ଚିତ୍ରର କଳ୍ପନା କରାଯାଇ ପାରେ । ସୂର୍ଯ୍ୟ, ଚନ୍ଦ୍ର ଓ ଅନ୍ୟ ଗ୍ରହମାନଙ୍କ ଗତିକୁ ବୁଝିବାରେ ଏହି ରାଶିଚକ୍ର ଆମକୁ ସାହାଯ୍ୟ କରିଥାଏ । କିନ୍ତୁ କାହା ଜୀବନରେ କ'ଣ ହେବ (ରାଶିଫଳ ବା ଭାଗ୍ୟଫଳ) ସେ ବିଷୟରେ ଏ ସୁନ୍ଦର ତାରାମାନେ ଜାଣିବେ ବା କ'ଣ ? ଖାଲି ଆଖିରେ ଦେଖି ଦେଖି ମଣିଷ ଯେତିକି ଜାଣି ପାରିଥିଲା ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଆହୁରି ବେଶୀ ଜାଣିଲା । ଦୂରବୀକ୍ଷଣ ଯନ୍ତ୍ରରେ ଦେଖିବା ମଧ୍ୟ ବହୁ ମଜାର କଥା । ଚନ୍ଦ୍ରର ଦେହରେ କେତେ ଯେ ଗାତ, ଶନି ଗ୍ରହର ଚାରିପଟେ ବଳୟ, ବୃହସ୍ପତିର ଟିକି ଟିକି କିଛି ଉପଗ୍ରହ ଏମିତି ଅନେକ କିଛି ଆମେ ଦେଖି ପାରିବା ସାଧାରଣ ଦୂରବୀକ୍ଷଣ ଯନ୍ତ୍ରଟିଏର ସାହାଯ୍ୟରେ । ଆଉ ବଡ ବଡ଼ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଖାଲି ଆଖିକୁ ନ ଦିଶୁଥିବା ଜିନିଷ ବିଷୟରେ ଆମେ ଅନେକ କଥା ଜାଣି ପାରୁଛେ ।

କେତେ ଜଣ ମଣିଷଙ୍କ ଚେଷ୍ଟା ଫଳରେ ଆମେ ଜାଣିଲେ ସୂର୍ଯ୍ୟ ମଧ୍ୟ ଗୋଟିଏ ତାରା । ଏହି ତାରାଗୁଡ଼ିକ ଗୋଟିଏ ଗୋଟିଏ ନିଆଁ ପିଣ୍ଡୁଳା ଭଳି । ଏମାନଙ୍କର ବୟସ ମଧ୍ୟ ଅନେକ ବେଶୀ । ବୈଜ୍ଞାନିକମାନଙ୍କର ହିସାବରୁ ଜଣାଯାଇଛି ଯେ ସୂର୍ଯ୍ୟ ଜନ୍ମ ହୋଇଛି ୬୦୦ କୋଟି ବର୍ଷ ଆଗରୁ । ତା'ର ଆକାର ଏତେ ବଡ଼ ଯେ ଏତେ ସମୟ ଜଳିଲା ପରେ ମଧ୍ୟ ଏହା ସରି ଯାଇ ନାହିଁ । ତେବେ ଏହା ନିଶ୍ଚୟ ଦିନେ ଥଣ୍ଡା ହୋଇଯିବ । ଖୁସିର କଥା ଯେ ସୂର୍ଯ୍ୟ ଥଣ୍ଡା ହେବାକୁ ଆହୁରି ୫୦୦୦ କୋଟି ବର୍ଷ ଲାଗିବ । ଶୁଣିଲେ କିନ୍ତୁ ଆଶ୍ଚର୍ଯ୍ୟ ଲାଗିପାରେ ଯେ ସୂର୍ଯ୍ୟର ଶକ୍ତି ଯେଉଁ ଉପାୟରେ ବାହାରେ ଅତି ଧ୍ୱଂସକାରୀ ଉଦ୍‌ଜାନ ବୋମା ସେହି ଉପାୟରେ କାମ କରେ । ପରମାଣୁର ବିଭାଜନରୁ ମିଳୁଥିବା ବିଦ୍ୟୁତ୍ ଶକ୍ତି ମଧ୍ୟ ସେହିପରି ଏକ ପ୍ରକ୍ରିୟାରୁ ମିଳିଥାଏ । ପରମାଣୁର ଏହି ଶକ୍ତି ଭଲ କାମରେ ଲାଗିବ ବା ଧ୍ୱଂସ ପାଇଁ ଲାଗିବ ତାହା ନିର୍ଭରକରେ ମଣିଷ ଉପରେ ।

ଏ ଶକ୍ତିଶାଳୀ ପରମାଣୁଟି ତେବେ କ'ଣ ? ଅନେକ ଦିନ—ପ୍ରାୟ ୨୦୦୦ ବର୍ଷ ତଳେ ଭରତ ଓ ଗ୍ରୀସ୍‌ର କେତେକ ଦାର୍ଶନିକ ଏ ବିଷୟରେ ଚିନ୍ତା କରିଥିଲେ । ସେମାନଙ୍କ ମତରେ ସବୁ ଜିନିଷ ଅତି ଛୋଟ କଣିକାରେ ଗଢ଼ା । ଆଉ ଏହି କଣିକା ଗୁଡ଼ିକର ନାଁ ଅଣୁ ଓ ପରମାଣୁ । ଦୁଇଟି ପରମାଣୁ ଭିତରେ ଥିବା ଫାଙ୍କା ଯାଗାରେ ଆଉ କିଛି ପରମାଣୁ ରହିଯାଇ ପାରିବେ । ତେଣୁ ଗିଲାସେ ପାଣିରେ କିଛି ଲୁଣମିଳାଇ ଦେଲେ ପାଣିର ପରିମାଣ ବଢିଯାଏ ନାହିଁ । କାରଣ ପାଣିର ଅଣୁ ଭିତରେ ଥିବା ଯାଗାରେ ଲୁଣର ଅଣୁଗୁଡ଼ିକ ରହିଯା'ନ୍ତି । ଗରମ କରିଦେଲେ ଯେତେବେଳେ ପାଣି-ତକ ଉଡ଼ିଯାଏ ସେତେବେଳେ ଲୁଣତକ ବାହାରି ଆସେ । ଆଜି ଆମେ ଏହି ଅଣୁ ପର-ମାଣୁଙ୍କ ବିଷୟରେ ଅନେକ ଅଧିକା କଥା ଜାଣିଛେ । ଏମାନଙ୍କର ଆକାର ବିଷୟରେ ମଧ୍ୟ ଆମର ସଠିକ ଧାରଣା ଆସି ପାରିଛି । ଏମାନେ ଏତେ ଛୋଟ ଯେ ୧୦ କୋଟି ପରମାଣୁଙ୍କୁ ଲଗାଲଗି କରି ଗୋଟିଏ ଧାଡ଼ିରେ ରଖିଲେ ଏକ ସେଣ୍ଟିମିଟର ଲମ୍ବା ମଧ୍ୟ ହେବ ନାହିଁ ।

ଆମ ଘରିପଟର ସବୁ ଜିନିଷ—ଖଟ, ଘର ଝିଟିପିଟି, ଆମ୍ବଗଛ, ଧ୍ରୁବତାରା ବା ନକ୍ଷତ୍ରପୁଞ୍ଜ—ସବୁକିଛି ଏହି ପରମାଣୁରୁ ହିଁ ଗଢ଼ା । ସେଇଟା ବଡ଼ ମଜାର କଥା ନୁହେଁ କି ? ସବୁଠାରୁ ଛୋଟ କଣିକାକୁ ନେଇ ଏ ବିରଟ ବିରଟ ଜିନିଷ ସବୁ ଗଢ଼ା । ଏମିତି କେତେ ବିସ୍ମୟକର ଜ୍ଞାନର ଭଣ୍ଡାରରେ ପଶିବା ପାଇଁ ଆମର ଗୁବିକାଠି ହେଉଛି ଶିକ୍ଷା । ଆଉ ଶିକ୍ଷାର ଗୋଟିଏ ବଡ଼ ପାହାଚ ହେଉଛି ଲେଖାପଢା—ସାକ୍ଷ-ରତା । ଜ୍ଞାନ ଖୁବ୍ ଆନନ୍ଦଦାୟକ ମଧ୍ୟ । ଆସ ଅକ୍ଷର, ଶବ୍ଦ ଓ ବାକ୍ୟର ଜାହାଜ ଚଢି ଆମେ ଜ୍ଞାନର ସମୁଦ୍ରରେ ଭସି ବୁଲିବାର ଖୁସି ଓ ଶକ୍ତି ପାଇବା ।



# ବୈଜ୍ଞାନିକ ଦୃଷ୍ଟିକୋଣ

ପଣ୍ଡିତ ନେହେରୁ

ସବୁ ଦେଶର ଓ ସବୁ ଜାତିର ଲୋକଙ୍କ ପାଇଁ ଆଜି ବିଜ୍ଞାନର ବ୍ୟବହାର ଅନିବାର୍ଯ୍ୟ ଓ ଅପରିହାର୍ଯ୍ୟ ଅଟେ । କିନ୍ତୁ ତାକୁ ଖାଲି ବ୍ୟବହାର କଲେ ଚଳିବ ନାହିଁ । ବିଜ୍ଞାନର ଉପଯୁକ୍ତ ପ୍ରୟୋଗ ପାଇଁ ଏବଂ ଜୀବନର ସମସ୍ୟାଗୁଡ଼ିକର ସମାଧାନ ପାଇଁ ଦରକାର ଏକ ବିଜ୍ଞାନସମ୍ମତ ପନ୍ଥା । ଏହି ପନ୍ଥାର ପରିଚାୟକ ହେଉଛି ସାହସୀକତା, ବିଜ୍ଞାନର ସମୀକ୍ଷାମୂଳକ ଦୃଷ୍ଟିକୋଣ , ସତ୍ୟ ଓ ନୂତନ ଜ୍ଞାନର ସନ୍ଧାନ, କୌଣସି କଥାକୁ ବିନା ପରୀକ୍ଷାରେ ଗ୍ରହଣ କରି ନେବାର ବିରୋଧ ନୂଆ ତଥ୍ୟ ବଳରେ ପୁରୁଣା ସିଦ୍ଧାନ୍ତକୁ ବଦଳାଇବାର ସାମର୍ଥ୍ୟ, ମନଗଢ଼ା ତତ୍ତ୍ୱ ବଦଳରେ ପ୍ରତ୍ୟକ୍ଷ ତଥ୍ୟ ଉପରେ ଭରସା, ଦୃଢ଼ ମାନସିକ ଶୃଙ୍ଖଳା ଇତ୍ୟାଦି ।

●

# ଆମ ଘର ଏଇ ପୃଥିବୀ-୨

ଆମ ଚାରିପଟେ ଥିବା ଜିନିଷସବୁ ଆମର ଏତେ ଚିହ୍ନା ଯେ ଆମେ ସେ ସବୁ ବିଷୟରେ କେବେ କିଛିଭାବୁ ନାହିଁ । ଆମ ପାଖାପାଖି ଲୋକଙ୍କ ଅବସ୍ଥା କଥା ଭାବ ତ । ଆମର ଅଧିକାଂଶ ପଡ଼ୋଶୀ ଅଭାବରେ ଅଛନ୍ତି । ଦରକାର ଅନୁଯାୟୀ ତାଙ୍କର ଘର ବା ଖାଇବାକୁ ନାହିଁ । ଅନ୍ୟର ଜମି ବା କାରଖାନାରେ ସେମାନେ ଖଟନ୍ତି । ସେ କାମ ମଧ୍ୟ ସବୁବେଳେ ମିଳେ ନାହିଁ । ଯେତେବେଳେ ମରୁଡ଼ି ଓ ଦୁର୍ଭିକ୍ଷ ଆସେ ସେତେବେଳେ ମଣିଷ ଓ ଜୀବଜନ୍ତୁ ବହୁତ ସଂଖ୍ୟାରେ ମରିଯା'ନ୍ତି । ବୁଢ଼ାବୁଢ଼ୀ ଲୋକମାନେ କହିବାର ଆମେ ଶୁଣିଥିବା ଯେ ଆଗରୁ ସମୟ ଭଲ ଥିଲା । ସମସ୍ତଙ୍କର ଜମି ଥିଲା, ଦୁର୍ଭିକ୍ଷ ଆସୁ ନ ଥିଲା ଇତ୍ୟାଦି । କିନ୍ତୁ ଆମେ ନିଜେ ତ ଅନେକ ଉପକାରୀ ନୂଆକଥା ଦେଖି ପାରୁଛେ ଯାହାକି କିଛି ବର୍ଷ ତଳେ ନଥିଲା । ରାସ୍ତା, ସ୍କୁଲ, କଳକାରଖାନା ଇତ୍ୟାଦି । ଦୋକାନ ବଜାରରେ ମିଳୁଥିବା ଏତେ ପ୍ରକାର ଜିନିଷ ଆମ ଅଜା ଜେଜେଙ୍କ ଅମଳରେ ତ ନିଶ୍ଚୟ ନ ଥିଲା ସବୁ କିଛି ଯେ ଭଲ ପାଇଁ ବଦଳୁଛି, ତା'ନୁହେଁ । ଆଜି ଆମେ ପ୍ରାୟ ସମସ୍ତେ ପାଣିର ଅଭାବ ଦେଖୁଛେ । ଅନେକ ନଈ ଶୁଖି ଯାଉଛି । ପାଣି ପାଇଁ ଅନେକ ଦୂର ଯିବାକୁ ପଡୁଛି । କେତେକ ଲୋଭୀ କାଠ ବ୍ୟବସାୟୀ ଜଙ୍ଗଲ କାଟିନେବା ଫଳରେ ଏହା ହେଉଛି ବୋଲି ଆମେ ଜାଣୁଛେ । ତେବେ ଭଲହେଉ ବା ଖରାପ ହେଉ ସବୁକିଛି ବଦଳୁଛି ନିଶ୍ଚୟ । ଅଧିକାଂଶ ଆସ୍ତେ ଆସ୍ତେ ବଦଳୁଛି; ଯାହା ଆମେ ଅନେକ ଦିନ ପରେ ଲକ୍ଷ୍ୟ କରୁଛେ । ଆଉ କିଛି ଆମ ଆଖି ଆଗରେ ବଦଳୁଥିଲେ ମଧ୍ୟ ଆମ ଅଭ୍ୟାସରେ ପଡ଼ି ଯାଇଥିବାରୁ ଏହା ଆମକୁ ବଦଳିବା ଭଳି ଲାଗୁ ନାହିଁ । ଦିନରୁ ରାତି ଓ ପୁଣି ଦିନ ହେବା, ଗୋଟିଏ ଋତୁ ଯାଇ ଆଉ ଗୋଟିଏ ଆସିବା ଇତ୍ୟାଦି ଆମ ଆଖିରେ ଦେଖିବା କଥା । ପାଠ ପଢୁଥିବା ଛୋଟ ପିଲାମାନେ ମଧ୍ୟ ପୃଥିବୀ ବୁଲୁଥିବାରୁ ଏପରି ହେଉଥିବାର ଜାଣନ୍ତି । ଆଉ କିଛି କଥା ଆମେ ଜାଣିପାରୁ ନ ଥିଲେ ମଧ୍ୟ ସବୁବେଳେ ଚାଲିଛି । ଆମର ଏଇ ପୃଥିବୀ ଓ ତା ସାଙ୍ଗରେ ଆମେ ଆଉ ଆମର ଘର, ଗଛ, ପାଣି, ପବନ ସବୁକିଛି ସୂର୍ଯ୍ୟର ଚାରିପଟେ ଘଣ୍ଟାକୁ ଏକ ଲକ୍ଷ କିଲୋମିଟର ବେଗରେ ବୁଲି ଚାଲିଛି ।

ପ୍ରକୃତରେ ଆମେ ନିଜେ ଓ ଆମ ଚାରିପାଖର ସବୁକିଛି ପ୍ରତି ମୁହୂର୍ତ୍ତରେ ବଦଳି ଚାଲିଛି ଓ ଗତିକରି ଚାଲିଛି । ଆମ ଦେହ ଭିତରେ ମଧ୍ୟ କେତେ ଯେ ଦୌଡ଼ ଚାଲିଛି ଭାବିଲେ ଆଶ୍ଚର୍ଯ୍ୟ ଲାଗିବ । ଆମେ ଜନ୍ମହେବା ଆଗରୁ ଆମର ହୃତ୍‌ପିଣ୍ଡ ତାର କାମ କରିଦିଏ ଯେ ବନ୍ଦହୁଏ ଆମେ ମଲା ବେଳକୁ । ଆଉ ଏ ସମୟରେ ଲିଟର ଲିଟର ରକ୍ତ ଆମ ଦେହ ଭିତରେ ଏପଟ ସେପଟ ହୋଇ ଚାଲିଥାନ୍ତି । ଆମେ ନିଶ୍ୱାସରେ ନେଉଥିବା ପବନ, ଖାଉଥିବା ଖାଦ୍ୟ ଓ ପାଣି ଇତ୍ୟାଦି ଆମ ଦେହ ଭିତରେ

ବଦଳିବାରେ ଲାଗିଥାନ୍ତି । ଅସଂଖ୍ୟ ଜୀବ-କୋଷକୁ ନେଇ ଆମ ଦେହଟି ଗଢ଼ା । ସେହି ଜୀବକୋଷମାନଙ୍କ ଭିତରୁ ଅନେକ ପ୍ରତି ସେକେଣ୍ଡରେ ମରୁଛନ୍ତି ଓ ନୂଆ କୋଷ-ଗୁଡ଼ିକ ତାଙ୍କ ଯାଗାରେ ଆସି ଯାଉଛନ୍ତି । ଆମେ ନିଦରେ ଶୋଇଥିଲାବେଳେ ମଧ୍ୟ ଏସବୁ କାମ ଲାଗି ରହିଛି । ଆମ ଚାରିପଟର ଗଛ ଜୀବଜନ୍ତୁମାନଙ୍କ ଭିତରେ ମଧ୍ୟ ଏ ସବୁ ଚାଲୁ ରହିଛି । ଏମିତିକି ଗୋଡ଼ି ପଥର ଇତ୍ୟାଦି ନିର୍ଜୀବ ଜିନିଷମାନଙ୍କୁ ଗଢ଼ିଥିବା ଅଣୁ ପରମାଣୁଗୁଡ଼ିକ ମଧ୍ୟ ସବୁବେଳେ ବୁଲିବାରେ ବ୍ୟସ୍ତ । ଦେଖିବାକୁ ଗଲେ କୌଣସି ଜିନିଷ ନ ବଦଳି କରି ରହି ପାରିବ ନାହିଁ । ପରିବର୍ତ୍ତନ ବା ବଦଳି-ବାଟା ଏ ବିଶ୍ୱର ମୌଳିକ ଧର୍ମ ।

ଆମ ଜୀବନରେ ମଧ୍ୟ ପରିବର୍ତ୍ତନଟା ସେହିପରି ନିଶ୍ଚିତ । ଆମ ସାମାଜିକ ଅବସ୍ଥା ଓ ଚଳଣି ସବୁବେଳେ ବଦଳି ଚାଲିଛି । କିଛି ଭଲ ଦିଗରେ ଓ କିଛି ଖରାପ ଦିଗରେ । ଆଉମଧ୍ୟ ଏ ବଦଳି ଚାଲିବାଟା କେବେ ବି ବନ୍ଦ ହେବ ନାହିଁ । କେତେ ଲକ୍ଷ ବର୍ଷର ଏ ମଣିଷ ସମାଜର ଇତିହାସରୁ ଏହା ଭଲଭାବରେ ଜଣାପଡେ । ଆଗ-କାଳର ମଣିଷ ଅକ୍ଷରର ବ୍ୟବହାର ଜାଣି ନ ଥିଲା । ତେଣୁ ସେ ସମୟର କଥା କିଛି ଲେଖାହୋଇ ରହି ନାହିଁ । କିନ୍ତୁ ମଣିଷ ବିଭିନ୍ନ କୌଶଳ ବଳରେ ସେ ସବୁ ଜାଣି ପାରିଛି ।

ଆଦିମ ମଣିଷ ପ୍ରାୟ ବନ୍ୟଜନ୍ତୁଙ୍କ ଭଳି ଜଙ୍ଗଲରେ ହିଁ ରହୁଥିଲା ଓ ଚାଲୁଥିଲା । କିନ୍ତୁ ଏହି ମଣିଷ ସିଧା ଛିଡ଼ାହୋଇ ଦୁଇ ଗୋଡ଼ରେ ଚାଲି ପାରୁଥିବାରୁ ତା'ର ହାତ ଦୁଇଟି ଅନ୍ୟ କାମରେ ଲାଗି ପାରୁଥିଲା । ଏହି ହାତର ସାହାଯ୍ୟରେ ସିଏ ପଥର ଓ ହାଡ଼ରୁ ଅସ୍ତ୍ର ତିଆରି କରି ଶୀକାର କରିପାରିଲା ଓ ମାଟି ତାଡ଼ି ମୂଳ ସବୁ କାଢ଼ି ଖାଇ ପାରିଲା । ଦଳ ଦଳ ହୋଇ ରହୁଥିବାରୁ ମଣିଷ ବାଘ, ସିଂହ ଇତ୍ୟାଦି ବଳୁଆ ଜନ୍ତୁ-ମାନଙ୍କୁ ଦୂରେଇ ରଖି ପାରିଲା । ଦଳ ଭିତରେ ନିଜ ନିଜର ମନକଥା ଜଣାଇବା ଚେଷ୍ଟାରୁ ମଣିଷର ଭାଷାର ସୃଷ୍ଟି ହେଲା । ସିଧାହୋଇ ଚାଲିବା, ହାତ ଓ ହତିଆରର ବ୍ୟବହାର ଏବଂ ଭାଷା ମଣିଷକୁ ଜୀବଜନ୍ତୁଙ୍କ ମଧ୍ୟରେ ଗୋଟିଏ ସ୍ୱତନ୍ତ୍ର ସ୍ଥାନ ଦେଲା ଓ ବଳୁଆ ଶତ୍ରୁମାନଙ୍କ ଭିତରେ ସିଏ ବଞ୍ଚି ରହି ପାରିଲା । ସିଏ କିନ୍ତୁ ଜନ୍ତୁଙ୍କ ଭଳି କଞ୍ଚା ମାଂସ ହିଁ ଖାଉଥିଲା କାରଣ ରାନ୍ଧିବା କଥା ସିଏ ଚିନ୍ତାକରି ନ ଥିଲା । ନିଆଁ ଓ ହାଣ୍ଡି ଇତ୍ୟାଦିର ବ୍ୟବହାର ମଧ୍ୟ ତାକୁ ଜଣା ନ ଥିଲା । ନିଆଁକୁ ସେ ଡରିକରି ଦୂରରେ ରହୁଥିଲା ଓ ତାକୁ "ଅଗ୍ନି ଦେବତା" ମାନି ପୂଜା କରୁଥିଲା । ଅନେକ ଦିନ ପରେ, ଆଜିକୁ ପ୍ରାୟ ୨ ଲକ୍ଷ ବର୍ଷ ତଳେ, ମଣିଷ ଦୁଇ ଖଣ୍ଡ ପଥର ଘଷି ନିଆଁ ବାହାର କରିବା ଶିଖିଲା । ମଣିଷର ବିଭିନ୍ନ ଆବିଷ୍କାର ଭିତରୁ ଏଇଟି ଅତି ଗୁରୁତ୍ୱପୂର୍ଣ୍ଣ ଥିଲା । ପ୍ରାୟ ସବୁ ଦେଶର ପୁରାଣ କଥାରେ ମଣିଷ କିପରି ଦେବତାମାନଙ୍କ ହାତରୁ ନିଆଁକୁ ଛଡ଼ାଇ ଆଣିଲା ସେ ବିଷୟରେ ଅନେକ ବର୍ଣ୍ଣନା ରହିଛି । ନିଆଁ ସାହାଯ୍ୟରେ ମଣିଷ ଆହୁରି ବଳୁଆ ହୋଇ ଉଠିଲା । ବଣୁଆ ଜନ୍ତୁମାନେ ନିଆଁ ଡରରେ ତା'ଠାରୁ ଦୂରେଇ ରହିଲେ । ନିଆଁକୁ ଅକ୍ତିଆରରେ ରଖି ମଣିଷ ତା'ର ଖାଦ୍ୟକୁ ରାନ୍ଧିକରି ଖାଇଲା ଓ ଥଣ୍ଡାବେଳେ ନିଜକୁ ଉଷୁମ ରଖିପାରିଲା ।

ଏମିତି ହଜାର ହଜାର ବର୍ଷର ଅଭିଜ୍ଞତାକୁ ନେଇ ମଣିଷ ତା'ର ହାତ ହତି-ଆର ସବୁକୁ ଅନେକ ବାଗେଇ ପାରିଲା । ପଥରର ମୁନିଆ ବର୍ଚ୍ଛା ଓ ଧାରୁଆ କୁରାଢ଼ି ଏବଂ ଧନୁତୀର ମଧ୍ୟ ତିଆରି କଲା । ଏସବୁ ସାହାଯ୍ୟରେ ସିଏ ଆହୁରି ଭଲଭାବେ ଶୀକାର କରି ପାରିଲା । ପ୍ରାୟ ୧୦ ହଜାର ବର୍ଷ ତଳେ ସିଏ ଗୋଟିଏ ଖୁବ୍ ବଡ଼ କଥା ଆବିଷ୍କାର କଲା । ତା'ହେଲା ଚାଷ କାମ । ସେ ପର୍ଯ୍ୟନ୍ତ ସିଏ ଜଙ୍ଗଲରୁ ଯେତିକି ଫଳମୂଳ ବା ଶସ୍ୟ ପାଉଥିଲା, ଚାଷ ଫଳରେ ତା'ଠାରୁ ଅନେକ ବେଶୀ ପାଇପାରିଲା । ଯଥେଷ୍ଟ ଖାଦ୍ୟ ମିଳିବାରୁ ମଣିଷର ସଂଖ୍ୟା ମଧ୍ୟ ବଢ଼ି ଚାଲିଲା ଓ ଜୀବମାନଙ୍କ ଭିତରେ ଶ୍ରେଷ୍ଠହୋଇ ପାରିଲା ।

ପ୍ରଥମ ଅବସ୍ଥାରେ ଦଳେ ମଣିଷଙ୍କ ଭିତରେ ସମସ୍ତେ ସମାନଭାବରେ ଚାଲୁଥିଲେ । ଆସ୍ତେ ଆସ୍ତେ କିନ୍ତୁ କେତେଜଣ ମଣିଷ ଅନ୍ୟମାନଙ୍କ ଉପରେ କର୍ତ୍ତୃତ୍ୱ ଦେଖା-ଇଲେ । ରାଜା ଓ ଧର୍ମଗୁରୁମାନଙ୍କର ଆଧିପତ୍ୟ ବଢ଼ିଲା । ବିଭିନ୍ନ ଲୋକ ବିଭିନ୍ନ କାମ କରିବା ପ୍ରଥା ମଧ୍ୟ ଆରମ୍ଭ ହେଲା । ଆଜି ଆମେ ଦେଖୁଛେ ଯେ ଶହ ଶହ ଏ ପ୍ରକା-ରର କାମ ପାଇଁ ଲୋକମାନେ ସ୍ୱତନ୍ତ୍ର ତାଲିମ ପାଉଛନ୍ତି । କେତେଗୁଡ଼ାଏ କାମକୁ ଅନ୍ୟ କାମ ଅପେକ୍ଷା ବଡ଼ବୋଲି ମନେ କରାଗଲା । ଜଙ୍ଗଲରେ ଶୀକାର କରି ଚାଲୁ-ଥିଲା ବେଳେ ସମସ୍ତେ ଯେପରି ସମାନ କାମ କରୁଥିଲେ ଓ ସମାନ ଭାଗ ପାଉଥିଲେ ତାହା ଆଉ ଚଳିଲା ନାହିଁ । ମଣିଷ ଚାଷ କାମ କରିବା ସାଙ୍ଗେ ସାଙ୍ଗେ ଗାଈ, କୁକୁର, ଘୋଡ଼ା ଇତ୍ୟାଦି ପଶୁମାନଙ୍କୁ ପାଳିବାକୁ ଆରମ୍ଭ କଲା । ତା'ର ଜୀବନ ଆସ୍ତେ ଆସ୍ତେ ଜଟିଳ ହୋଇ ଉଠିଲା । କେତେଜଣ ଖୁବ୍ ବଳୁଆ ଓ ଧନୀହୋଇ ଉଠିଲେ । କିନ୍ତୁ ଅନ୍ୟମାନେ ଗରୀବ ହୋଇ ତାଙ୍କର ଦାସ ଭଳି ଚଳିଲେ । ଆଜିର ପୃଥିବୀରେ ମଧ୍ୟ ଏ ପ୍ରକାରର ଶୋଷଣ ଚାଲୁ ରହିଛି । କିନ୍ତୁ ଏ ପରିସ୍ଥିତିକୁ ବଦଳାଇ ପାରିବାର ସମ୍ଭା-ବନା ମଧ୍ୟ ଆମ ହାତରେ ରହିଛି । ଏଥିପାଇଁ ଯେଉଁ ସଂଘର୍ଷ ଦରକାର ତା ସମ୍ଭବ ହେବ ଜ୍ଞାନବଳରେ । ଆଉ ଏ ଜ୍ଞାନ ପାଇବାକୁ ହେଲେ ଆମକୁ ଲେଖି ପଢ଼ି ଶିଖି-ବାକୁ ହେବ । ଆମ ଜୀବନକୁ ଭଲ ଦିଗରେ ନେବାକୁ ହେଲେ ନିରକ୍ଷରତା ଦୂର କରିବାକୁ ହେବ ।

ପ୍ରାୟ ୫,୦୦୦ ବର୍ଷ ତଳେ ମଣିଷ ଲେଖିବା ଆରମ୍ଭ କଲା । ଅନେକ ଉନ୍ନତି କଲା ପରେ ଆଜିର ଭାଷା ଅବସ୍ଥାରେ ପହଞ୍ଚିଲା ବେଳକୁ ପ୍ରାୟ ୩,୦୦୦ ବର୍ଷ ବିତି-ଗଲା । ସେ ସମୟରେ ଖୁବ୍ ଅଳ୍ପ ଲୋକ ଲେଖିପାରୁଥିଲେ । ଅଧିକାଂଶ ଅଜ୍ଞାନତା ଭିତରେ ରହୁଥିଲେ । ପ୍ରକୃତି ଓ ବିଶ୍ୱ ବିଷୟରେ ନୂଆ ନୂଆ କଥା ସବୁ ଆସ୍ତେ ଆସ୍ତେ ଜଣାପଡ଼ିଲା । ଏହି ଜ୍ଞାନ ସାହାଯ୍ୟରେ ମଣିଷ ସାଧାରଣଭାବରେ ମିଳିପାରୁଥିବା ଜିନିଷରୁ ଦରକାରୀ ଜିନିଷ ସବୁ କରିପାରିଲା । ମାଟିର ହାଣ୍ଡି ଇତ୍ୟାଦି ଗଢ଼ି ରାନ୍ଧିବା ଇତ୍ୟାଦି କାମରେ ଲଗାଇ ପାରିଲା । ସୂର୍ଯ୍ୟ, ଚନ୍ଦ୍ର, ତାରା ଇତ୍ୟାଦିଙ୍କର ଗତି ଋତୁ ପରିବର୍ତ୍ତନ ଇତ୍ୟାଦି ବିଷୟରେ ମଣିଷ ଜାଣିଲା । ହୁଳି ଡଙ୍ଗାରୁ ଆରମ୍ଭ କରି ପାଲଟଣା ଜାହାଜ ତିଆରି କଲା । ଚକର ବ୍ୟବହାର ଶିଖିଲା ଏବଂ ଘର ତିଆରି, ଧାତୁର ଆବିଷ୍କାର

ଇତ୍ୟାଦି ଅନେକ କାମରେ ଆଗେଇଲା । ଆଜିକୁ ୫,୦୦୦ରୁ ୬,୦୦୦ ବର୍ଷ ତଳେ କେତେଗୁଡ଼ିଏ ଜନବସତି ଗଢ଼ିଉଠିଲା । ନୀଳ ନଦୀ କୂଳରେ ମିଶରୀୟ ସଭ୍ୟତା, ୟୁଫ୍ରେଟସ୍ ଓ ଟାଇଗ୍ରୀସ୍ ନଦୀ କୂଳରେ ବାବିଲୋନ୍ ସଭ୍ୟତା, ସିନ୍ଧୁନଦୀ କୂଳରେ ମହେଞ୍ଜୋଦାରୋ ଓ ହୋୟାଙ୍ଗ୍ ହୋ ଉପତ୍ୟକାରେ ଚୀନ ଦେଶର ସଭ୍ୟତା ସବୁ ଖୁବ୍ ଉନ୍ନତ ହୋଇ ପାରିଥିଲା । ମଣିଷ ସମାଜ ଆହୁରି ଆଗେଇ ଚାଲିଲା । ଆମ ଦେଶରେ ଚରକ, ଶୁଶ୍ରୁତଙ୍କ ଭଳି ଚିକିତ୍ସକ, ପାତଞ୍ଜଳୀ, କନଦ୍ଙ୍କ ଭଳି ଦାର୍ଶନିକ, ପାଣିନୀଙ୍କ ଭଳି ଭାଷାବିତ୍, ଅଶ୍ୱଘୋଷ ଓ କାଳିଦାସଙ୍କ ଭଳି କବି, ଆର୍ଯ୍ୟଭଟ୍ଟ ଓ ବ୍ରହ୍ମଗୁପ୍ତଙ୍କ ଭଳି ଜ୍ୟୋତିର୍ବିଜ୍ଞାନୀ ଭାସ୍କରଙ୍କ ଭଳି ଗାଣିତିକ ଇତ୍ୟାଦି ଦେଖାଦେଲେ । ଗ୍ରୀସ୍, ରୋମ୍, ଆରବ ଓ ଚୀନ ଦେଶମାନଙ୍କରେ ମଧ୍ୟ ଏ ଭଳି ବିଦ୍ୱାନମାନେ ବାହାରିଲେ । ଆମର ଜ୍ଞାନ, ବିଜ୍ଞାନ ଓ କାରିଗରୀ ବିଦ୍ୟା ବଢ଼ି ଚାଲିଲା, ମଣିଷ ସମୁଦ୍ର ପାରିହୋଇ ପାରିଲା, ପାଣି ଓ ପବନର ସ୍ରୋତର ଶକ୍ତିକୁ କାମରେ ଲଗାଇଲା । ବଡ଼ ବଡ ଘର, ଦୁର୍ଗ,ରାସ୍ତା, ପୋଲ ଇତ୍ୟାଦି ଗଢ଼ିଉଠିଲା । କଳ କାରଖାନାମାନ ମଧ୍ୟ ବସିବାରେ ଲାଗିଲା ।

ମଣିଷ ସମାଜ ଆଗେଇ ଚାଲିଲା । କିନ୍ତୁ ଚାରି ପାଞ୍ଚ ହଜାର ବର୍ଷ ତଳେ ସମାଜରେ ଯେଉଁ ବିଷମତା ମୁଣ୍ଡ ଟେକିଥିଲା ତାହା ଅନେକ ଗୁଣ ବଢ଼ିଗଲା । ଜମି-ଦାରମାନେ ଚାଷୀ ଓ ମୂଲିଆଙ୍କ ଉପରେ ବିଶେଷକରି ହରିଜନମାନଙ୍କ ଉପରେ ଅନେକ ଅତ୍ୟାଚାର କଲେ ତଥାପି ମାନବ ଜାତି ଉନ୍ନତି କରି ଚାଲିଲା । ଗାଲିଲିଓ ଓ ନିଉଟନ୍ଙ୍କ ଭଳି ବୈଜ୍ଞାନିକମାନେ ଏ ଅନନ୍ତ ବିଶ୍ୱର ରହସ୍ୟ ସବୁକୁ ବୁଝିବାକୁ ଆରମ୍ଭ କଲେ । ବାରୁଦ ଓ ବନ୍ଧୁକର ଆବିଷ୍କାର ଫଳରେ କେତେଗୁଡ଼ିଏ ଦେଶ ପୃଥିବୀକୁ ଅଧିକାର କରିବାକୁ ଆରମ୍ଭ କଲେ । ସେହିପରି ଛପାକଳର ଉଦ୍ଭାବନ ଫଳରେ ଶିକ୍ଷା ଓ ଜ୍ଞାନର ବିସ୍ଫୋରଣ ଘଟିଲା । ସହଜରେ ବହି ମିଳିପାରିବା ଫଳରେ ଅଧିକରୁ ଅଧିକ ଲୋକ ପଢ଼ି ଶିଖିଲେ । ଗାଡ଼ି, ମଟର, ଡାକ–ତାର ଇତ୍ୟାଦିର ବିକାଶ ଫଳରେ କହିବାକୁ ଗଲେ ପୃଥିବୀ ଛୋଟ ହେବାକୁ ଲାଗିଲା । ପ୍ରାୟ ୨୦୦ ବର୍ଷ ତଳେ ୟୁରୋପରେ ବିଭିନ୍ନ ଉତ୍ପାଦନ ପ୍ରଣାଳୀ ବଦଳିବାକୁ ଆରମ୍ଭ କଲା; ଯାହାକୁ ଆମେ ଶିଳ୍ପ ବିପ୍ଳବ ବୋଲି କହିଲେ ।

ରାଜନୈତିକ ବ୍ୟବସ୍ଥା ମଧ୍ୟ ଅନେକ ବଦଳିଲା । ଜମିଦାରମାନଙ୍କ ପ୍ରତିପତ୍ତି କମିଗଲା । ବ୍ୟବସାୟୀ ଓ କାରଖାନା ମାଲିକମାନେ ପଇସା ବଳରେ ବଳୁଆ ହେଲେ । ଏ ସମୟକୁ ପୃଥିବୀରେ ସଂସ୍କୃତି, ଭାଷା, ଧର୍ମ ଇତ୍ୟାଦିକୁ ନେଇ ଅନେକ ଦେଶ ଗଢ଼ି ଉଠିଥିଲେ । ଏମାନଙ୍କ ମଧ୍ୟରେ ବିବାଦ, ପ୍ରତିଦ୍ୱନ୍ଦିତା ଏପରିକି ଯୁଦ୍ଧ ମଧ୍ୟ ଲାଗି ରହିଲା । ରାମାୟଣ, ମହାଭାରତ ଭଳି ବର୍ଣ୍ଣନାରୁ ଆମେ ଜାଣିଛେ ଯେ ଆଗ କାଳରେ ଯୁଦ୍ଧ କେବଳ ରାଜା ଓ ସୈନ୍ୟମାନଙ୍କ ମଧ୍ୟରେ ହେଉଥିଲା । ସାଧାରଣ ଲୋକେ ଏଥିରେ ଭାଗ ନେଉ ନ ଥିଲେ । କିନ୍ତୁ ଟାଣୁଆ ଜାତୀୟତାବାଦ ଓ ବେପାରୀ-ମାନଙ୍କର ଲୋଭ ଫଳରେ ଯେଉଁ ଦୁଇଟି ମହାଯୁଦ୍ଧ ହୋଇଥିଲା, ସେଥିରେ କୋଟି କୋଟି ନିରୀହ ଲୋକ ମରିଗଲେ । ଏହି ସମୟରେ ଋଷିଆରେ ଯେଉଁ ସାମ୍ୟବାଦର ଆରମ୍ଭ

ହେଲା ତାହା କ୍ରମେ କ୍ରମେ ଚୀନ, କ୍ୟୁବା, ଭିଏତ୍‌ନାମ୍ ଇତ୍ୟାଦି ଦେଶକୁ ବ୍ୟାପିଲା । କିନ୍ତୁ ବର୍ତ୍ତମାନ ଏ ପ୍ରକାରର ବ୍ୟବସ୍ଥା ମଧ୍ୟ ବଦଳି ଯାଉଛି ।

ଯୁଗ ଯୁଗ ଧରି ଏପରି କେତେ ଯେ ପରିବର୍ତ୍ତନ ଘଟିଛି ମଣିଷ ଜୀବନରେ । ସାମାଜିକ ଚଳଣି, ଖାଇବା, ପିନ୍ଧିବା ସବୁ କିଛି ବଦଳି ଗଲିଛି । ତଥାପି ଅନେକ ଲୋକ ଭାବନ୍ତି ଯେ କିଛି ବଦଳୁ ନାହିଁ । ଆଗଭଳି ସେମାନେ ଦୁଃଖ କଷ୍ଟରେ ଅଛନ୍ତି । କିନ୍ତୁ ପ୍ରକୃତରେ କ'ଣ କିଛି ବଦଳି ନାହିଁ ? ଏପରି ହୁଏତ ହୋଇପାରେ ଯେ ତାଙ୍କ ଅବସ୍ଥା ଆଗଠାରୁ ବେଶୀ ଖରାପ ହୋଇଛି, କିନ୍ତୁ ପରିବର୍ତ୍ତନ ଲାଗିରହିଛି । ପରିବର୍ତ୍ତନ ବିନା ଏ ଜୀବନ ସମ୍ଭବ ନୁହେଁ । ଏ ପ୍ରକାର ପରିବର୍ତ୍ତନର କାରଣ ଓ ଦିଗ ବିଷୟରେ ଆମେ ଯଦି ସଚେତନ ରହିବା ତେବେ ଆମେ ନିଜ ଜୀବନକୁ ଭଲ ଦିଗରେ ବଦଳାଇ ବାକୁ ଚେଷ୍ଟାକରିପାରିବା । କିନ୍ତୁ ଏଥିପାଇଁ ଯେଉଁ ଜ୍ଞାନ ଦରକାର ତାହା ପାଇବାକୁ-ହେଲେ ଲେଖିପଢି ଜାଣିବା ଦରକାର । ଏହି ଲମ୍ବା ବାଟର ପ୍ରଥମ ପାହାଚ ହେବ ସାକ୍ଷରତା ।



# ଯୁବ ସମାଜକୁ ଉପଦେଶ

**ଅଧ୍ୟାପକ ସି. ଭି. ରମଣ**

........ତୁମେମାନେ ବିଶ୍ୱବିଦ୍ୟାଳୟ ଛାଡ଼ି ଗୋଟିଏ ନିର୍ଦ୍ଦୟ ଏବଂ କଠୋର ଦୁନିଆର ସାମ୍ନାରେ ପହଞ୍ଚିଲଣି ।

.........ଆଶା ଓ ସାହସ ହରାଅ ନାହିଁ । ନିଜର କାମରେ ସଫଳତା ମିଳିବ କେବଳ ସାହସିକ ନିଷ୍ଠା ଫଳରେ । ପୃଥିବୀର କୌଣସି କଥା ଝାଳବୁହା ଖଟଣୀ ବିନା ଆସି ପାରିବ ନାହିଁ ।

.........ମୋର ଅଭିଜ୍ଞତାରୁ ମୁଁ ଦୃଢ଼ ଭାବରେ କହିପାରିବି ଯେ ଭାରତୀୟ ମସ୍ତିଷ୍କ ଅନ୍ୟ କାହାରିଠାରୁ ଦୁର୍ବଳ ନୁହେଁ । ଆମର ହୁଏତ ଅଭାବ ରହିଛି ସାହସରେ, କାମ କରିବାର ଉନ୍ମାଦନାରେ । ଆମେ ନିଜକୁ ଛୋଟ ମନେକରି ଦେଉଛେ । ଏହି ପରାଜୟ ମନୋଭାବକୁ ଭାଙ୍ଗିବାକୁ ପଡ଼ିବ । ଆମର ଦରକାର ବିଜୟ ପାଇଁ ଉତ୍ସାହ ଯାହା ଆମକୁ ନିଜର ନ୍ୟାଯ୍ୟ ଆସନରେ ବସାଇ ପାରିବ । ସେହି ଉତ୍ସାହ ଯାହା ଜାଣି ରଖିବ ଯେ ଗୋଟିଏ ଉନ୍ନତ ସଭ୍ୟତାର ଉତ୍ତରାଧିକାରୀ ରୂପେ ଏ ବିଶ୍ୱରେ ଆମର ସ୍ଥାନ ସ୍ୱତନ୍ତ୍ର । ସେହି ଅଦମ୍ୟ ଉତ୍ସାହ ଜାଗି ଉଠିଲେ ଆମର ନ୍ୟାଯ୍ୟ ଭବିଷ୍ୟତ ଗଢି ତୋଳିବାରେ କିଛି ବି ଆମକୁ ବାଧା ଦେଇ ପାରିବ ନାହିଁ ।



# ମୁଁ ପୃଥିବୀ କହୁଛି......

ସୂର୍ଯ୍ୟଠାରୁ ଗଣିଲେ ଏ ସୌର ଜଗତରେ ମୋର ସ୍ଥାନ ତୃତୀୟ । ଆୟତନରେ ମୁଁ ଗ୍ରହମାନଙ୍କର ଠିକ ମଝିରେ । କିନ୍ତୁ ଅନ୍ୟ ପଥୁରିଆ ଗ୍ରହମାନଙ୍କ (ବୁଧ, ମଙ୍ଗଳ, ଶୁକ୍ର) ଠାରୁ ମୁଁ ବଡ଼ । ସୂର୍ଯ୍ୟ ଠାରୁ ମୋର ଦୂରତା ୧୫ କୋଟି କି.ମି.

ମୋର ବୟସ ୪୮୦ କୋଟି ବର୍ଷ, ଉଚ୍ଚତା (ଦୁଇ ମେରୁର ଦୂରତା) ୧୨, ୭୧୩.୬ କି.ମି., ମୋଟେଇ (ବ୍ୟାସ) ୧୨, ୭୫୬.୩ କି.ମି. ବା (ପରିଧି) ୪୦୦୭୫.୧ କି.ମି., କ୍ଷେତ୍ରଫଳ ୫୧ କୋଟି ବର୍ଗ କି.ମି., ଆୟତନ ୧,୦୮,୩୩୨ କୋଟି ଘନ କି.ମି., ସାନ୍ଦ୍ରତା ୫.୫୨ ଗ୍ରା/ସି.ସି., ଓଜନ ୬ କୋଟି କୋଟି କୋଟି ଟନ୍, ଜଳଭଗ ୭୦.୮%, ସ୍ଥଳ ଭଗ ୨୯.୨%, ନିଜ ଗ୍ଧରିପଟେ ବୁଲିବାର ବେଗ (ବିଷୁବରେଖାଠାରେ) ଘଣ୍ଟାପ୍ରତି ୧୬୭୦ କି.ମି., ନିଜ ଗ୍ଧରି ପଟେ ବୁଲିବାର ସମୟ ୨୩ ଘଣ୍ଟା ୫୬ ମିନିଟ୍ ୪.୦୯ ସେକେଣ୍ଡ । ସୂର୍ଯ୍ୟ ଗ୍ଧରିପଟେ ବୁଲିବାର ବେଗ ଘଣ୍ଟା ପ୍ରତି ୧,୦୭,୨୮୦ କି.ମି., ସୂର୍ଯ୍ୟ ଗ୍ଧରିପଟେ ବୁଲିବାର ସମୟ ୩୬୫ ଦିନ ୫ ଘଣ୍ଟା ୪୮ ମିନିଟ୍ ୪୬ ସେକେଣ୍ଡ, ମୋର ବାୟୁମଣ୍ଡଳର ଓଜନ ୫୦ କୋଟି ଟନ୍ ।

ମୋ ଦେହରେ ଅଛି : ଓଜନ ଅନୁପାତରେ ଅମ୍ଳଜାନ ୪୯.୫%, ସିଲିକନ ୨୫.୮%, ଆଲୁମିନିଅମ୍ ୭.୫%, ଲୁହା ୪.୭%, ସୋଡ଼ିଅମ୍ ୨.୬%, ପଟାସିଅମ୍ ୨.୪%, ମ୍ୟାଗ୍ନେସିଅମ୍ ୧.୯%, ଉଦ୍‌ଜାନ ୦.୯% ...

ମୁଁ ମୋର ବାପା ସୂର୍ଯ୍ୟଠାରୁ ବହୁତ ଛୋଟ । ମୋ ଭଳି ୧୦ ଲକ୍ଷଟା ତା ଦେହ ଭିତରେ ରହିଯିବେ । କିନ୍ତୁ ମୋର ବଳ କିଛି କମ୍ ନୁହେଁ । ତୁମେ ଯଦି ମୋ ଭିଡିବାରୁ ଖସି ମହାକାଶକୁ ଯିବାକୁ ଗ୍ଧହିଁବ 'ତେବେ ତୁମକୁ ଦୌଡ଼ିବାକୁ ହେବ ସେକେଣ୍ଡ ପ୍ରତି ୧୧ କି.ମି. ବେଗରେ !



# ସୃଜନୀକା : କ'ଣ, କାହିଁକି ?

ସୃଜନୀକା ଗୋଟିଏ ବିଜ୍ଞାନପ୍ରେମୀ ସ୍ୱେଚ୍ଛାସେବୀ ଅନୁଷ୍ଠାନ । ସବୁ ବୟସର ଓ ଶ୍ରେଣୀର ଲୋକମାନଙ୍କ ଭିତରରେ ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶ ସୃଜନୀକାର ଲକ୍ଷ୍ୟ—ବିଚାରକରିବା, ପ୍ରଶ୍ନ ଉଠାଇବା, ଆତ୍ମସମୀକ୍ଷା ଇତ୍ୟାଦି ଏହି ଦୃଷ୍ଟିକୋଣର ପରିଚାୟକ । ପିଲାମାନଙ୍କର କୌତୁହଳୀ ଓ ସୃଜନଶୀଳତାକୁ ବଢିବା ପାଇଁ ସୁଯୋଗ ମିଳିଲେ ଏହି ଦୃଷ୍ଟିକୋଣର ବିକାଶ ଆପେ ଆପେ ହୋଇ ପାରିବ । ତେଣୁ ଆମର ପ୍ରଥମ କାର୍ଯ୍ୟକ୍ରମଗୁଡ଼ିକ ରହିଛି ପିଲାଙ୍କ ପାଇଁ ଏବଂ ପିଲାଙ୍କ ମାଧ୍ୟମରେ ଶିକ୍ଷକ/ଅଭିଭାବକ/ଜନସାଧାରଣଙ୍କ ପାଇଁ । ଏସବୁ ଦ୍ୱାରା ସ୍କୁଲ, ଶିକ୍ଷା ବ୍ୟବସ୍ଥା ଏବଂ ଶିକ୍ଷା ପ୍ରତି ଅଭିଭାବକମାନଙ୍କର ମନୋବୃତ୍ତିର ଆବଶ୍ୟକୀୟ ପରିବର୍ତ୍ତନ କ୍ରମେ କ୍ରମେ ଆସିପାରିବ ବୋଲି ଆମର ଆଶା ।

କହିବା ବାହୁଲ୍ୟ ଯେ ବହି ପଢିବା ଓ ଶିଖିବା ଭିତରେ ପ୍ରଭେଦ ଅନେକ । ଶ୍ରେଣୀ ଗୃହର ପାଠ ଓ ପରୀକ୍ଷା ଶିକ୍ଷାର ଗୋଟିଏ ଛୋଟିଆ ଅଂଶ । ପ୍ରକୃତ ଶିକ୍ଷା ଜୀବନବ୍ୟାପୀ ଚାଲିଥାଏ ଯାହାର ପରିସର "course" ଠାରୁ ବହୁତ ବଡ଼ । ପ୍ରକୃତ ଶିକ୍ଷାଟା ସବୁବେଳେ ଆନନ୍ଦଦାୟକ—ବୋଝ ନୁହେଁ । କେବଳ ତଥ୍ୟ ସଂଗ୍ରହ ଏ ଶିକ୍ଷାର ଲକ୍ଷ୍ୟ ନୁହେଁ; ତଥ୍ୟ ଓ ଘଟଣାସବୁର ବିଶ୍ଳେଷଣ ହେବ ଏହାର ମୂଳ ଉଦ୍ଦେଶ୍ୟ ।

ଏ ଚିନ୍ତାଧାରାକୁ ବାସ୍ତବ ରୂପଦେବା ପାଇଁ ଆମର ବିଭିନ୍ନ ପରୀକ୍ଷା ଭିତରେ *ଅଛି ଶିଶୁ ବିଜ୍ଞାନ ମେଳା, ଶିକ୍ଷକ କର୍ମଶାଳା, ବିଜ୍ଞାନ ଖେଳନା, ଆଲୋଚନା ଚକ୍ର, ବିଜ୍ଞାନ ତରଙ୍ଗ ପତ୍ରିକା ଇତ୍ୟାଦି ।* ବିଜ୍ଞାନର ତଥ୍ୟକୁ ବୁଝାଇ ପାରୁଥିବା ଜିନିଷଟିଏ ଆମପାଇଁ "ପାଠୋପକରଣ" ନୁହେଁ—ଏହା ଗୋଟିଏ ଖେଳନା । "ନିଜ ହାତେ ଗଢିବା—ଖେଳି ଖେଳି ଶିଖିବା—ଭଲଭାବେ ବୁଝିବା" ହେଉଛି ଆମର ଜୀବନ ଦର୍ଶନ । ଏସବୁର ସମଷ୍ଟି ହେଉଛି ଜନ ବିଜ୍ଞାନ ଆନ୍ଦୋଳନ ।

---

**ବିଜ୍ଞାନ ତରଙ୍ଗ**—ଛାତ୍ରଛାତ୍ରୀ, ଶିକ୍ଷକ-ଶିକ୍ଷୟିତ୍ରୀ ଏବଂ ଜନସାଧାରଣଙ୍କ ପାଇଁ ସୃଜନୀକାର ମାସିକ ବିଜ୍ଞାନ ଓ କ୍ରିୟାତ୍ମକ ପତ୍ରିକା । ପ୍ରତି ଖଣ୍ଡ ଟ. ୪.୦୦, ବାର୍ଷିକ ଟ. ୫୦.୦୦ ।

---

**ଅଗଷ୍ଟ ୧୯୯୫** **ମୂଲ୍ୟ ଟ ୧.୦୦**